# ବାରମାସୀ ପର୍ବପର୍ବାଣୀ



ରଚୟିତା
ଶ୍ରୀ ନାରାୟଣ ଭରସା ମେହେର

# ବାରମାସୀ ପର୍ବପର୍ବାଣୀ



ରଚୟିତା

ଶ୍ରୀ ନାରାୟଣ ଭରସା ମେହେର

# ବାରମାସୀ ପର୍ବପର୍ବାଣୀ

ରଚୟିତା :
ଜବ ଶ୍ରୀ ନାରାୟଣ ଭରସା ମେହେର
( ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ )
" ମନୋହର କବିତା ବାସ "
ଜଗନ୍ନାଥ ଛକ, ସିନାପାଲି ୭୬୭୦୧୮
ଜିଲ୍ଲା- ନୂଆପଡ଼ା ( ଓଡ଼ଶା )

ସଙ୍କଳକ ଓ ସ୍ୱତ୍ୱାଧିକାରୀ :
ଅଧ୍ୟାପକ ଡକ୍ଟର ହରେକୃଷ୍ଣ ମେହେର

ପ୍ରଥମ ସଂସ୍କରଣ
୧୯୯୭

ରଚୟିତାଙ୍କ ଅନୁମତିକ୍ରମେ
ପ୍ରକାଶକ :
ଶ୍ରୀ ଅଶ୍ୱିନୀ କୁମାର ମିଶ୍ର
ମୁଂ- ପଣ୍ଡାଆ ଗାଁ
ପୋ- ଖେଇରପଦର

ମୁଦ୍ରାକର :
ଅଖିଳ ପ୍ରେସ୍, ଭବାନୀପାଟଣା

ମୂଲ୍ୟ— ୧୦ ଟଙ୍କା

ଓଁ ନମୋ ଭଗବତେ ବାସୁଦେବାୟ

# ନିବେଦନ

ଜନ-ସମାଜରେ ହିନ୍ଦୁଶାସ୍ତ୍ର ମତେ ବାର ମାସରେ ନାନା ପର୍ବ ପାଳିତ ହୋଇଥାଏ । ପଞ୍ଜିକା ମାନଙ୍କରେ ଏହି ପର୍ବାଦିର ବିଶେଷ ବିବରଣୀ ଦୃଷ୍ଟିଗୋଚର ହୋଇଥାଏ । ପଲ୍ଲୀଠାରୁ ନଗରୀ ପର୍ଯ୍ୟନ୍ତ ଲୋକମାନେ ନିଜନିଜ ରୁଚିମତେ ଦେବ-ଦେବୀଙ୍କ ଠାରେ ବିଶ୍ୱାସ ରଖି ପର୍ବ ପାଳନ କରିଥାନ୍ତି । ଉତ୍କଳରେ ପ୍ରଚଳିତ ବିବିଧ ପ୍ରଧାନ ପର୍ବ ସମ୍ବନ୍ଧରେ ମୋର ଏହି '**ବାରମାସୀ ପର୍ବପର୍ବାଣୀ**' ପୁସ୍ତିକରେ ସୂଚନା ଦିଆଯାଇଛି ।

ମୋର ପୌତ୍ରଦ୍ୱୟ ଆୟୁଷ୍ମାନ ସର୍ବେଶ୍ୱର ଓ ସୁରେଶ୍ୱର, ଏହି ପୁସ୍ତକର ପାଣ୍ଡୁଲିପି ଲେଖିବାରେ ସାହାଯ୍ୟ କରି ଥିବାରୁ ସେମାନଙ୍କୁ ସସ୍ନେହ ଶୁଭାଶୀର୍ବାଦ ଜଣାଉଛି । ରଚନାରେ ଭ୍ରମ ଥିଲେ ସୁଧୀଜନ ସଦୟ ମାର୍ଜନା କରିବେ ବୋଲି ମୋର ସବିନୟ ପ୍ରାର୍ଥନା । ଲୋକେ ଏହି ପୁସ୍ତକର ପଠନ ଓ ଗାୟନ କରି ଆନନ୍ଦିତ ହେଲେ ମୋର ଶ୍ରମ ସାର୍ଥକ ମଣିବି । ଇତି ।

'ମନୋହର କବିତା ବାସ'
ସିନାପାଲି-୭୬୭୧୦୮ — ବିନୀତ
ତା ୨୪ ୧-୧୬ [ଶ୍ରୀପଞ୍ଚମୀ] — ଶ୍ରୀ ନାରାୟଣ ଭରସା ମେହେର

ଓଁ ଶ୍ରୀ ଗଣେଶାୟ ନମଃ

# ବାରମାସୀ ପର୍ବପର୍ବାଣୀ

( ରାଗ - ଗଉମାଳଆ )

ଜୟ ଜୟ ଜଗନ୍ନାଥ,
ଶଙ୍ଖ-ଚକ୍ର-ଗଦା ଶାର୍ଙ୍ଗ-ହସ୍ତ ହେ
ପ୍ରଭୁ ମହାଲକ୍ଷ୍ମୀ ଦେବୀ-କାନ୍ତ । ଶ୍ରୀହରି ହେ ॥ ୧ ॥

ବଡ ଦେଉଳ ଠାକୁର
ଭ୍ରାତା ଭଗିନୀଙ୍କି ଘେନି ସଙ୍ଗର ହେ
ପୂଜା ପାଉଛ ନୀଳକନ୍ଦର । ଶ୍ରୀହରି ହେ ॥ ୨ ॥

ବାନା ପତିତପାବନ,
ନାମ ବହିଅଛ ଚକାନୟନ ହେ
ନୀଳଚକ୍ରେ ଉଡ଼ାଅ କେତନ । ଶ୍ରୀହରି ହେ ॥ ୩ ॥

ଜୟ ହେ ପୁରୁଷୋତ୍ତମ,
ଜଗତେ ବିଖ୍ୟାତ ତୁମ୍ଭ ସୁନାମ ହେ
ଧନ୍ୟ ଶିରୀକ୍ଷେତ୍ର ପୁଣ୍ୟ ଧାମ । ଶ୍ରୀହରି ହେ ॥ ୪ ॥

ତୁମ୍ଭ ରୂପ ନାନା ବେଶ,
ଭକ୍ତ ଜଣେ ଦେଖି ହୁଅନ୍ତି ତୋଷ ହେ
ତୁମ୍ଭ ମହିମା ଅଟେ ଅଶେଷ । ଶ୍ରୀହରି ହେ ॥ ୫ ॥

ଯୁଗେ ଯୁଗେ ଅବତାର,
ହୋଇ ନାଶ କର ଅବନୀଭର ହେ
ଭବେ ଧର୍ମ-ସଂସ୍ଥାପନା କର । ଶ୍ରୀହରି ହେ ॥ ୬ ।

ହେ ଦେବ ଜଗଦୀଶ୍ୱର,
ଭକ୍ତେ ଅନୁବ୍ରତେ ପାଦେ ତୁମ୍ଭର ହେ
ନାରାୟଣ ଭରସା ମୋହର । ଶ୍ରୀହରି ହେ ॥ ୭ ॥

କୃପାକର ଜଗନ୍ନାଥ,
ଲେଖିବଛି ପର୍ବପର୍ବାଣୀ ଗୀତ ହେ
ପଢ଼ ଲୋକେ ହେବେ ଆନନ୍ଦତ । ଶ୍ରୀହରି ହେ ॥ ୮ ॥

ଶୁଣ ମୋ ପ୍ରାଣ-ମିତଣୀ,
ବାରମାସୀ ହିନ୍ଦୁ ପର୍ବପର୍ବାଣୀ ଲୋ
ନବ ପଞ୍ଜିକାରୁ ଏହା ଜାଣି । ସଜନୀ ଲୋ ॥ ୯ ॥

ବଇଶାଖ ମେଷ ମାସ,
ମହାବିଷୁବ ସଂକ୍ରାନ୍ତି ପ୍ରବେଶ ଲୋ
ପଣା ସଂକ୍ରାନ୍ତି ନାମ ବିଶେଷ । ସଜନୀ ଲୋ ॥ ୧୦ ॥

ଦେବ ଦେବୀଙ୍କ ପୂଜନ,
ହୋମ ଯଜ୍ଞ ଝାମୁଯାତ୍ରା ବିଧାନ ଲୋ
ଲୋକେ କରିଥାନ୍ତି ପଣା ପାନ । ସଜନୀ ଲୋ ॥ ୧୧ ॥

ଜଗନ୍ନାଥ ସନ୍ମୁଖରେ,
ନାନା ବେଶ ଲଗେ ପୁରୀ ମନ୍ଦିରେ ଲୋ
ନୂଆ ପାଞ୍ଜି ଚଳେ ଏ ଦିନରେ । ସଜନୀ ଲୋ ॥ ୧୨ ॥

ଏ ସଂକ୍ରାନ୍ତି ଦିନେ ନର,
ଖାଇଲେ ମହୁର ନିମ୍ବପତର ଲୋ
ତାର ସର୍ପବାଧା ହୁଏ ଦୂର । ସଜନୀ ଲୋ ॥ ୧୩ ॥

ବୈଶାଖ ଶୁକ୍ଳ ତୃତୀୟା,
ଅକ୍ଷୟ ତୃତୀୟା ଅଟି ବଢ଼ୁଆ ଲୋ
ଜାଣ ଅପୂର୍ବା ଯୋଗଟି ଏହା । ସଜନୀ ଲୋ ॥ ୧୪ ॥

ବୀଜବପନ ଏ ଦିନେ.
ଅନୁକୂଳ କରନ୍ତି କୃଷୀମାନେ ଲୋ
ଧାନ୍ୟ କ୍ଷେତ୍ରରେ ଆନନ୍ଦ ମନେ । ସଜନୀ ଲୋ ॥ ୧୫ ॥

ଚନ୍ଦନ ଯାତ୍ରା ଆରମ୍ଭ,
ଜଗନ୍ନାଥଙ୍କର ବଡ ଉତ୍ସବ ଲୋ
ପୁରୀଧାମେ ଶୁଭେ ହର୍ଷରବ । ସଜନୀ ଲୋ ॥ ୧୬ ॥

ଉତ୍କଳେ ବହୁ ସ୍ଥାନରେ,
ଦେବ ଦେବୀଙ୍କର ପୂଜା ପୀଠରେ ଲୋ
ଯଜ୍ଞଯାତ୍ରା କରନ୍ତି ବିଧିରେ । ସଜନୀ ଲୋ ॥ ୧୭ ॥

ବୈଶାଖ ଶୁକ୍ଳ ନବମୀ,
ଏ ତିଥିରେ ସୀତା ଥିଲେ ଜନମି ଲୋ
ମିଥିଳାରେ ଜନକଜା ଲକ୍ଷ୍ମୀ । ସଜନୀ ଲୋ ॥ ୧୮ ॥

ବୈଶାଖ ମାସ ଶୁକଳ.
ଚତୁର୍ଦ୍ଦଶୀ ଦିନ କି ଶୁଭ ବେଳ ଲୋ
ପ୍ରଭୁ ନୃସିଂହଙ୍କ ଜନ୍ମକାଳ । ସଜନୀ ଲୋ ॥ ୧୯ ॥

ନରସିଂହ ରୂପ ଧରି,
ସ୍ତମ୍ଭରୁ ବାହାରି ହିରଣ୍ୟ ଚିରି ଲୋ
ମହୀ ଭର ହରିଲେ ଶ୍ରୀହରି । ସଜନୀ ଲୋ ॥ ୨୦ ॥

ଶ୍ରୀ ନୃସିଂହ-ନାଥ ତୀର୍ଥ,
ବୋଡା ସମ୍ବରରେ ହୋଇଛି ଖ୍ୟାତ ଲୋ
ସ୍ନାନ ଦାନେ ପାତକ ନିପାତ । ସଜନୀ ଲୋ ॥ ୨୧ ॥

ଏ ତୀର୍ଥେ ମେଳା ଏ ଦିନେ,
ଦେଖିଯାନ୍ତି ଜନେ ଆନନ୍ଦମନେ ଲୋ
ପ୍ରକୃତିର ରମ୍ୟ ଉପବନେ । ସଜନୀ ଲୋ ॥ ୨୨ ॥

ବୈଶାଖ ପୂର୍ଣ୍ଣିମା ପର୍ବ,
ରାଧାକୃଷ୍ଣ ଲୀଳା କି ସୁଖକର ଲୋ
ଶେଷ ହୁଏ ଚନ୍ଦନ ଯାତ୍ରା । ସଜନୀ ଲୋ ॥ ୨୩ ॥

ପୁଣ୍ୟ ଉତ୍କଳ ଧାମରେ,
ଚନ୍ଦନ ଯାତ୍ରା ନାନା ସ୍ଥାନରେ ଲୋ
କରିଥାଆନ୍ତି ଉଲ୍ଲାସେ ନରେ । ସଜନୀ ଲୋ ॥ ୨୪ ॥

ବୈଶାଖ-ସମାପ୍ତି ବ୍ରତ,
ଆଚରନ୍ତି କେତେ ସାଧୁ ଭକତ ଲୋ
ପୁଣ୍ୟ ମାସ ଏ ଶାସ୍ତ୍ର-ସମ୍ମତ । ସଜନୀ ଲୋ ॥ ୨୫ ॥

ମେଷ ପରେ ବୃଷ ମାସ,
ଜ୍ୟେଷ୍ଠ ମାସ ଖର ଦିଅଇ ତ୍ରାସ ଲୋ
ଜୀବଜନ୍ତୁ ହୁଅନ୍ତି ନିରାଶ । ସଜନୀ ଲୋ ॥ ୨୬ ॥

ଜ୍ୟେଷ୍ଠ କୃଷ୍ଣ ଅଷ୍ଟମୀରେ,
ଉତ୍କଳେ ଭଉଁରୀ ଯାତ୍ରା ବିଧିରେ ଲୋ
ଜନେ ପାଳିଥାନ୍ତି ମଣ୍ଡଳରେ । ସଜନୀ ଲୋ ॥ ୨୭ ॥

ଜ୍ୟେଷ୍ଠ ଅମାବାସ୍ୟା ଦିନ,
କରନ୍ତି ସାବିତ୍ରୀ ବ୍ରତ ପାଳନ ଲୋ
ସାଧ୍ୱୀ ପତିବ୍ରତା ନାରୀଗଣ । ସଜନୀ ଲୋ ॥ ୨୮ ॥

ଶ୍ରୀ ସାବିତ୍ରୀ ସତ୍ୟବାନ,
ସଙ୍ଗେ ଧର୍ମରାଜଙ୍କର ପୂଜନ ଲୋ
କରିଥାନ୍ତି ବ୍ରତେ ତୋଷମନ । ସଜନୀ ଲୋ ॥ ୨୯ ॥

ସତ୍ୟବାନ-ପ୍ରାଣ ପତି,
ବଞ୍ଚାଇଲେ ଧର୍ମ ଆଚରି ନିତି ଲୋ
ତୁଷି ବର ଦେଲେ ପିତୃପତି । ସଜନୀ ଲୋ ॥ ୩୦ ॥

ଜ୍ୟେଷ୍ଠ ଶୁକ୍ଳ ତୃତୀୟାରେ,
ରମ୍ଭା ତୃତୀୟା ପଡେ ଏ ଦିନରେ ଲୋ
ବ୍ରତ ପାଳନ୍ତ ନାରୀ ଆଦରେ । ସଜନୀ ଲୋ ।। ୩୧ ।।

ଜ୍ୟେଷ୍ଠ ଶୁକ୍ଳ ପଞ୍ଚମୀରେ,
ଶିବ ପାର୍ବତୀଙ୍କ ବିଭା ଶୁଭରେ ଲୋ
ହୁଏ ପାଳିତ ବହୁ ସ୍ଥାନରେ । ସଜନୀ ଲୋ ।। ୩୨ ।।

ଶିବ ପାର୍ବତୀ ବିବାହେ,
ସମ୍ବଳପୁରରେ ବଡ ଉତ୍ସାହେ ଲୋ
ଯାତ୍ରା ହୁଏ ମହା ସମାରୋହେ । ସଜନୀ ଲୋ ।। ୩୩ ।।

ଶୀତଳ ଷଷ୍ଠୀ ଦିବସ,
ଉତ୍କଳେ ପାଳନ୍ତି ଲୋକେ ସରସ ଲୋ
ଶ୍ରୀ-ମନ୍ଦିରେ ଯାତ୍ରା ବିଶେଷ । ସଜନୀ ଲୋ ।। ୩୪ ।।

ଜ୍ୟେଷ୍ଠ ଶୁକ୍ଳ ଦଶମୀରେ,
ଗଙ୍ଗାଦେବୀଙ୍କର ଜନ୍ମ ମର୍ତ୍ତ୍ୟରେ ଲୋ
ସ୍ୱର୍ଗୁଁ ଅବତରିଲେ ଭୂମିରେ । ସଜନୀ ଲୋ ।। ୩୫ ।।

ନାମ ଗଙ୍ଗା-ଦଶହରା,
ଯାର ଯଶ ଗାଉଛନ୍ତି ଏ ଧରା ଲୋ
ତାଙ୍କ ମହିମା ଅଶେଷ ପରା । ସଜନୀ ଲୋ ।। ୩୬ ।।

ଚମ୍ପକ ଦ୍ୱାଦଶୀ ଦିନ,
ଚମ୍ପା କୁସୁମରେ କୃଷ୍ଣ ଅର୍ଚ୍ଚନ ଲୋ
ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ଗଣନ । ସଜନୀ ଲୋ ।। ୩୭ ।।

ଏ ତିଥିରେ ଭଗବାନ,
କୂର୍ମ ଅବତାରେ ବିରାଜମାନ ଲୋ
ତାଙ୍କ ଜୟନ୍ତୀ ହୁଏ ପାଳନ । ସଜନୀ ଲୋ ।। ୩୮ ।।

ଜ୍ୟେଷ୍ଠ ପୌର୍ଣ୍ଣମାସୀ ଦିନ,
ଦେବ-ସ୍ନାନ ବୋଲି ଅଛି ବିଧାନ ଲୋ
ପ୍ରଭୁ ଜଗନ୍ନାଥଙ୍କର ସ୍ନାନ । ସଜନୀ ଲୋ ॥ ୩୯ ॥

ଆଷାଢ଼େ ରଜ ପରବ,
ମିଥୁନ ସଂକ୍ରାନ୍ତି ଦିନ ଉତ୍ସବ ଲୋ
ପାଳିଥାଆନ୍ତି ନାରୀ ସରବ । ସଜନୀ ଲୋ ॥ ୪୦ ॥

ରଜପର୍ବ ତିନିଦିନ,
ନାରୀଏ କରନ୍ତି ହର୍ଷେ ପାଳନ ଟକ
ନାନା ମଉଜେ ହୋଇ ମଗନ । ସଜନୀ ଲୋ ॥ ୪୧ ॥

ପହିଲି ରଜର ଦିନ,
ଭୂମି ଖନନାଦି ଅଛି ବର୍ଜନ ଲୋ
ହଳ ନିଷେଧ କରନ୍ତି ଜନ । ସଜନୀ ଲୋ ॥ ୪୨ ॥

ଆଷାଢ଼ର କୃଷ୍ଣପକ୍ଷ,
ଅମାବାସ୍ୟା ତିଥି ଜଗନ୍ନାଥଙ୍କ ଲୋ
ନେତ୍ର-ଉତ୍ସବ ପାପ-ନାଶକ । ସଜନୀ ଲୋ ॥ ୪୩ ॥

ଶୁକ୍ଳ ପ୍ରତିପ ଏହାର,
ଉଭଯାତ୍ରା ଚକାନୟନଙ୍କର ଲୋ
ଶ୍ରୀ-ମନ୍ଦିରେ ଉତ୍ସବ ଅପାର । ସଜନୀ ଲୋ ॥ ୪୪ ॥

ଆଷାଢ଼ ଶୁକ୍ଳ ଦ୍ୱିତୀୟ,
ଶ୍ରୀ-ଗୁଣ୍ଡିଚା ରଥ ଯାତରା ପ୍ରିୟା ଲୋ
ଦେଖି ଉଲ୍ଲସି ଉଠଇ ହିୟା । ସଜନୀ ଲୋ ॥ ୪୫ ॥

ଜଗନ୍ନାଥ ନନ୍ଦିଘୋଷ,
ରଥରେ ବିଜୟେ ଲଭି ସନ୍ତୋଷ ଲୋ
ଧନ୍ୟ ପ୍ରଭୁ ମହିମା ଅଶେଷ । ସଜନୀ ଲୋ ॥ ୪୬ ॥

ବଳଭଦ୍ର ତାଳଧ୍ୱଜେ,
ଦେବଦଳନରେ ସୁଭଦ୍ରା ବିଜେ ଲୋ
ତିନି ମୂର୍ତ୍ତି ତିନି ରଥେ ସାଜେ । ସଜନୀ ଲୋ ।। ୪୭ ।।

ବଡଦାଣ୍ଡେ ରଥଶୋଭ,
ଅପୂର୍ବ ଦୃଶ୍ୟ କି ମନଲୋଭ ଲୋ
ଦରଶକ କେ କଳିବ ଅଟା । ସଜନୀ ଲୋ ।। ୪୮ ।।

ଜନଗହଳି ଅଧିକ,
ଯହିଁ ପୂରିଥାନ୍ତି ଏ ତିନିଲୋକ ଲୋ
ବିଜେ ପ୍ରଭୁ ଜଗତନାୟକ । ସଜନୀ ଲୋ ।। ୪୯ ।।

ସେ ପ୍ରଭୁ ଚକାନୟନ,
କରିଅଛି ଥରେ ଯେ ଦରଶନ ଲୋ
ତାର ପାପାଦି ହୁଏ ମୋଚନ । ସଜନୀ ଲୋ ।। ୫୦ ।।

ଇନ୍ଦ୍ରଦ୍ୟୁମ୍ନ ରାଜା ଥିଲେ,
ଶ୍ରୀ ବଡ ଦେଉଳ ନିର୍ମାଣ କଲେ ଲୋ
ବ୍ରହ୍ମା ପ୍ରତିଷ୍ଠାରେ ଯୋଗ ଦେଲେ । ସଜନୀ ଲୋ ।। ୫୧ ।।

ଇନ୍ଦ୍ରଦ୍ୟୁମ୍ନ ମହାରାଜା,
ବଡ ଦେଉଳରେ ପାଆନ୍ତି ପୂଜା ଲୋ
ଗାଲମାଧବ ହେଲେ ଅପୂଜା । ସଜନୀ ଲୋ ।। ୫୨ ।।

ଆଷାଢ଼ ଶୁକ୍ଳ ପଞ୍ଚମୀ,
ନନ୍ଦିଘୋଷ କାଷ୍ଠ ଭଙ୍ଗନ୍ତି ଲକ୍ଷ୍ମୀ ଲୋ
ହେରା ପଞ୍ଚମୀ ନାମ ଏ ଜାଣି । ସଜନୀ ଲୋ ।। ୫୩ ।।

ଶୁକ୍ଳ ଅଷ୍ଟମୀ ଦିନ ତ,
ପର୍ଶୁରାମାଷ୍ଟମୀ ନାମ ବିଦିତ ଲୋ
ଲିଙ୍ଗରାଜଙ୍କ ଯାତ୍ରା ବିହିତ । ସଜନୀ ଲୋ ।। ୫୪ ।।

ନବମୀ ସଂଧ୍ୟା ଦର୍ଶନ,
ଶ୍ରୀ ଜଗନ୍ନାଥଙ୍କ କରେ ଯେ ଜନ ଲୋ
ପାଏ ସେ ଅନନ୍ତ ଫଳମାନ । ସଜନୀ ଲୋ ॥ ୫୫ ॥

ବହନ୍ତ ମାଉସୀ ଘରେ,
ନଅଦିନ ତିନି ମୂର୍ତ୍ତି ହର୍ଷରେ ଲୋ
ନାନା ବେଶ ଭୂଷନ୍ତ ସୁଖରେ । ସଜନୀ ଲୋ ॥ ୫୬ ॥

ଆଷାଢ଼ ଶୁକ୍ଳ ଦଶମୀ,
ସେ ପ୍ରଭୁ ବାହୁଡ଼ା ଯାତ୍ରାରେ ବମି ଲୋ
କେତେ ଆନନ୍ଦିତ ଭକ୍ତ ପ୍ରେମୀ । ସଜନୀ ଲୋ ॥ ୫୭ ॥

ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ,
ଏ ଯାତ୍ରା ସଙ୍ଗେ ପୁଣ୍ୟ ପର୍ବ ଲୋ
ତାହା କେ ମୁଖେ ବର୍ଣ୍ଣିପାରିବ । ସଜନୀ ଲୋ ॥ ୫୮ ॥

ବାହୁଡ଼ା ବିଜେ କରନ୍ତ,
ତିନି ମୂର୍ତ୍ତି ତିନି ରଥେ ବସନ୍ତ ଲୋ
ବଡ଼ ଦେଉଳେ ଫେରି ଆସନ୍ତ । ସଜନୀ ଲୋ ॥ ୫୯ ॥

ଏ ଘରେ ହରିଶୟନ,
କହିଥାନ୍ତି ଏକାଦଶୀର ଦିନ ଲୋ
ଶାସ୍ତ୍ରେ ହୋଇଛି ବିଧିବିଧାନ । ସଜନୀ ଲୋ ॥ ୬୦ ॥

ଆଷାଢ଼ ପୂର୍ଣ୍ଣିମା ତିଥି,
ବ୍ୟାସ ମହାଋଷିଙ୍କର ଜୟନ୍ତୀ ଲୋ
ଗୁରୁ ପୂର୍ଣ୍ଣିମା ଜନେ ପାଳନ୍ତି । ସଜନୀ ଲୋ ॥ ୬୧ ॥

ମିଥୁନ ପରେ କର୍କଟ,
ସଙ୍କ୍ରାନ୍ତି ଆସି ହୁଏ ପ୍ରକଟ ଲୋ
ଧାର ଶ୍ରାବଣ ମନ ଉଚଟ । ସଜନୀ ଲୋ ॥ ୬୨ ॥

କର୍କଟ ସଂକ୍ରାନ୍ତ ଦିନ,
ସୂର୍ଯ୍ୟଙ୍କର ଗତି ଦକ୍ଷିଣାୟନ ଲୋ
ନଦୀ ଉଚ୍ଛ୍ୱଳା ମନେ ଘେନ । ସଜନୀ ଲୋ ॥ ୬୩ ॥

ମନସା ପଞ୍ଚମୀ ତିଥି,
ନାଗପୂଜା କେତେ ଜଟନ୍ତ ଏଥି ଲୋ
ଶାସ୍ତ୍ରେ ରହିଛି ଯା'ର କୀରତି । ସଜନୀ ଲୋ ॥ ୬୪ ॥

ଚିତାଲାଗି ଅମାସ୍ୟାରେ,
ଜଗନ୍ନାଥ ଝେଉର ପିଷ୍ଟକାଡିରେ ଲୋ
ପୂଜା ହୁଏ ପ୍ରଭୁଙ୍କ ମନ୍ଦରେ । ସଜନୀ ଲୋ ॥ ୬୫ ॥

ଶୁକ୍ଳ ପଞ୍ଚମୀ ଶ୍ରାବଣ,
ଜାଗ୍ରତ ଗଉରୀ ପଞ୍ଚମୀ ଜାଣ ଲୋ
ପାଳିଥାଆନ୍ତ ଯେ ବ୍ରତୀଗଣ । ସଜନୀ ଲୋ ॥ ୬୬ ॥

ଶୁକ୍ଳ ଦଶମୀରେ ପର,
ଆରମ୍ଭ ହୁଏ ଝୁଲଣ ଯାତର ଲୋ
ରାଧାକୃଷ୍ଣଙ୍କ ଲୀଳା ମଧୁର । ସଜନୀ ଲୋ ॥ ୬୭ ॥

ଶ୍ରାବଣ ପୂର୍ଣ୍ଣିମା ଦିନ
ବଳଭଦ୍ର ପ୍ରଭୁଙ୍କର ଜନମ ଲୋ
ରକ୍ଷା ପୂର୍ଣ୍ଣିମା ଶେଷ ଝୁଲଣ । ସଜନୀ ଲୋ ॥ ୬୮ ॥

ଏହି ଶୁଭ ବାରେ ଲୋକେ,
ଗାଈ ଗୋରୁଙ୍କୁ ଯେ ବନ୍ଦାନ୍ତି ଥୋକେ ଲୋ
ଘରେ ପୂଜନ୍ତି ଅତି ଉତ୍ସୁକେ । ସଜନୀ ଲୋ ॥ ୬୯ ॥

ପବିତ୍ର ରକ୍ଷୀବନ୍ଧନ,
ଭ୍ରାତାଙ୍କ ହସ୍ତରେ ଭଗିନୀଗଣ ଲୋ
ରକ୍ଷୀ କରାଇଥାନ୍ତି ଧାରଣ । ସଜନୀ ଲୋ ॥ ୭୦ ॥

ଏ ଶ୍ରାବଣ ପୂର୍ଣ୍ଣିମାରେ,
କେତେ ଲୋକ ପର୍ବ ମାନନ୍ତି ଘରେ ଲୋ
ଇଷ୍ଟ ଦେବଙ୍କୁ ପୂଜି ତୋଷରେ । ।। ସଜନୀ ଲୋ ।। ୭୧ ।।

ତତ୍ପରେ ସିଂହ ମାସ,
ଉଲ୍ଲାସ ଭକ୍ତ ଜନ-ମାନସ ଲୋ
ବିଲେ ଧାନ୍ୟ ଦିଶଇ ସରସ । ସଜନୀ ଲୋ ।। ୭୨ ।।

ଏ ଭାଦ୍ରେ କୃଷ୍ଣ ଦ୍ୱିତୀୟା,
କୋଶଳୀ ଯାତର ହୁଏ ବଢ଼ିଆ ଲୋ
କେତେ ସ୍ଥାନେ ପାଳିଥା'ନ୍ତି ଏହା । ସଜନୀ ଲୋ ।। ୭୩ ।।

ଭାଦ୍ର କୃଷ୍ଣ ଚତୁର୍ଥୀରେ,
ଗଉରୀ ଚତୁର୍ଥୀ ପାଳନ୍ତି ନରେ ଲୋ
ବଟ ଧେନୁ ପୂଜନ ଏଥିରେ । ସଜନୀ ଲୋ ।। ୭୪ ।।

ଭାଦ୍ର କୃଷ୍ଣ ପଞ୍ଚମୀ ଏ,
ରକ୍ଷା-ପଞ୍ଚମୀ ଯେ ନାମ ବୋଲଏ ଲୋ
ଗୃହେ ପୂଜା ଶିବଙ୍କର ହୁଏ । ସଜନୀ ଲୋ ।। ୭୫ ।।।

ଗଣେଶ ଶିବ ଭୈରବ,
ଦ୍ୱାର ଦେଶେ କପାଟରେ ଲେଖିବ ଲୋ
ମନ୍ତ୍ରେ ପ୍ରଦୋଷ କାଳେ ପୂଜିବ । ସଜନୀ ଲୋ ।। ୭୬ ।।

ଦ୍ୱାରରେ ନନ୍ଦକେଶ୍ୱର,
ଜଗି ରହିଥାନ୍ତି ନିଜ ମନ୍ଦର ଲୋ
ତାଙ୍କୁ କର ବାରେ ନମସ୍କାର । ସଜନୀ ଲୋ ।। ୭୭ ।।

ଏ କୃଷ୍ଣ ପଞ୍ଚମୀ ବାର,
ରେଖା ପଞ୍ଚମୀ ଜଗନ୍ନାଥଙ୍କର ଲୋ
ରତ୍ନ-ରେଖା-ଲଗି ଶ୍ରୀମନ୍ଦର । ସଜନୀ ଲୋ ।। ୭୮ ।।

କୃଷ୍ଣ ଅଷ୍ଟମୀ ଉତ୍ସବ,
ଦେବକୀ-ଗରଭେ କୃଷ୍ଣ ସମ୍ଭବ ଲୋ
ନେଲେ ଗୋପପୁରେ ବସୁଦେବ । ସଜନୀ ଲୋ ॥ ୭୯ ॥

ଶ୍ରୀକୃଷ୍ଣଙ୍କ ଜନ୍ମଦିନ,
ଜନ୍ମାଷ୍ଟମୀ ନାମ ଜଗତେ ଗଣ୍ୟ ଲୋ
ବ୍ରତ ପାଳନ୍ତି ସାଧବୀ ଗଣ । ସଜନୀ ଲୋ ॥ ୮୦ ॥

ମଥୁରା ଗୋପ ନଗରେ,
ବୃନ୍ଦାବନ ଧାମେ ଜନ୍ମାଷ୍ଟମୀରେ ଲୋ
ମହୋତ୍ସବ ହୁଏ ଉତ୍ସାହରେ । ସଜନୀ ଲୋ ॥ ୮୧ ॥

ଗୋପେ ନନ୍ଦରଜା ଘରେ,
କୃଷ୍ଣ ଜନ୍ମୋତ୍ସବ କଲେ ହର୍ଷରେ ଲୋ
କୃଷ୍ଣ ଶୋଭେ ଯଶୋଦା-କୋଳରେ । ସଜନୀ ଲୋ ॥ ୮୨ ॥

କୃଷ୍ଣପକ୍ଷ ଉତ୍ସବର,
ରବିବାରେ ଓଷା କୁମାରୀଙ୍କର ଲୋ
ନାମ ଖୁଦୁରୁକୁଣୀ ଏହାର । ସଜନୀ ଲୋ ॥ ୮୩ ॥

ଅମାବାସ୍ୟା ସପ୍ତପୁରୀ,
ଉତ୍କଳେ ପାଳନ କରନ୍ତି ଭକ୍ତି ଲୋ
ଆନନ୍ଦରେ ବହୁ ନରନାରୀ । ସଜନୀ ଲୋ ॥ ୮୪ ॥

ଶ୍ରୀ ଜଗନ୍ନାଥ ମନ୍ଦରେ,
ସପ୍ତପୁରୀ ଭୋଗ ଲଗେ ବିଧିରେ ଲୋ
ମହାପ୍ରଭୁଙ୍କ ପୂଜା ସମ୍ଭାରେ । ସଜନୀ ଲୋ ॥ ୮୫ ॥

ଚାଳି ତୃତୀୟା ବରତ,
କରନ୍ତି ବାଳୀଏ ହରଷ ଚିତ୍ତ ଲୋ
ଗୌରୀ ଦେବୀଙ୍କ ପୂଜା ବିହିତ । ସଜନୀ ଲୋ ॥ ୮୬ ॥

ଭାଦ୍ର ଶୁକ୍ଳ ଚତୁର୍ଥୀରେ,
ଗଣେଶଙ୍କ ପୂଜା ବିଧି ମତରେ ଲୋ
ଲୋକେ ପାଳିଥାନ୍ତି ଉତ୍ସାହରେ । ସଜନୀ ଲୋ ॥ ୮୭ ॥

ବିଦ୍ୟାଦାତା ବିଘ୍ନରାଜା,
ଶିକ୍ଷକେ ବାଳକେ କରନ୍ତି ପୂଜା ଲୋ
ବିଦ୍ୟାଳୟେ କରି ସାଜସଜ୍ଜା । ସଜନୀ ଲୋ ॥ ୮୮ ॥

ଗ୍ରାମ ସହରେ ନଗରେ,
ମହୋତ୍ସବ ହୁଏ ବାଦ୍ୟନାଦରେ ଲୋ
ଗଣନାଥ ପୂଜନ୍ତି ଭକ୍ତିରେ । ସଜନୀ ଲୋ ॥ ୮୯ ॥

ଶୁକ୍ଳ ପଞ୍ଚମୀ ଭଦ୍ରବ,
ପାଳନ୍ତି ନବାନ୍ନ ଶୁଭ ପରବ ଲୋ
ଜନେ ପଶ୍ଚିମୋତ୍କଳେ ସବ । ସଜନୀ ଲୋ ॥ ୯୦ ॥

ନବାନ୍ନ ଭକ୍ଷଣ ଦିନେ,
ନବବସ୍ତ୍ର ପିନ୍ଧି ସକଳ ଜନେ ଲୋ
ନୂଆ ଖାଉଥାନ୍ତି ପରସନ୍ନେ । ସଜନୀ ଲୋ ॥ ୯୧ ॥

ଦେବ ଦେବୀଙ୍କ ମନ୍ଦିରେ,
ପୂଜା କରଥାଏ ନୂଆ ଖେଗରେ ଲୋ
ଭେଟ ମିଳନ ହୁଏ ଆଦରେ । ସଜନୀ ଲୋ ॥ ୯୨ ॥

ସମ୍ବଲପୁରେ ନବାନ୍ନ,
ପରବ ବିଶେଷ ହୁଏ ପାଳନ ଲୋ
ସମଲଇ ଦେବୀଙ୍କ ପୂଜନ । ସଜନୀ ଲୋ ॥ ୯୩ ॥

ଭାଦ୍ର ଶୁକ୍ଳ ପଞ୍ଚମୀରେ,
ପାଳିଥାନ୍ତି ଋଷି ପଞ୍ଚମୀ ନରେ ଲୋ
ଉପବାସ ବ୍ରତ ଏ ଦିନରେ । ସଜନୀ ଲୋ ॥ ୯୪ ॥

ଷଷ୍ଠୀ ଓଷା ଷଷ୍ଠୀ ଦିନ,
ଷଷ୍ଠୀ ଦେବୀଙ୍କର ହୁଏ ପୂଜନ ଲୋ
ସୋମନାଥ ବ୍ରତେ କେ ମଗନ । ସଜନୀ ଲୋ ॥ ୯୫ ॥

ଭାଦ୍ର ଶୁକ୍ଳ ସପ୍ତମୀ ତ,
ଲଳିତା-ସପ୍ତମୀ କୁକ୍‌କୁଟୀ-ବ୍ରତ ଲୋ
ନାରୀ କରନ୍ତି ଶାସ୍ତ୍ର-ସମ୍ମତ । ସଜନୀ ଲୋ ॥ ୯୬ ॥

ଭାଦ୍ର ଶୁକଳ ଅଷ୍ଟମୀ,
ଏ ଦିନରେ ରାଧା ଥିଲେ ଜନମି ଲୋ
ରାଧାଷ୍ଟମୀ ବ୍ରତ ନାମ ଜାଣି । ସଜନୀ ଲୋ ॥ ୯୭ ॥

ଭାଦ୍ର ଶୁକ୍ଳ ନବମୀରେ,
ପୂଜା ବ୍ରତ ଆଦି ହୁଏ ବିଧିରେ ଲୋ
ତାଳ ନବମୀ ଖ୍ୟାତ ପ ଞ୍ଜିରେ । ସଜନୀ ଲୋ ॥ ୯୮ ॥

ଏ ଶୁକ୍ଳ ଦ୍ୱାଦଶୀ ଦିନେ,
ବାମନ ଜନ୍ମ କଶ୍ୟପ-ସଦନେ ଲୋ
ଛପିଲେ ଯେ ବଳିକି ଭୂଦାନେ । ସଜନୀ ଲୋ ॥ ୯୯ ॥

ଛୁନିଆଁ ଦ୍ୱାଦଶୀ ନାମେ,
ଏ ଦିବସ ଗୋଟି ଉତ୍କଳ ଧାମେ ଲୋ
ସଣ ରଖିଅଛି ପୁଣ୍ୟକାମେ । ସଜନୀ ଲୋ ॥ ୧୦୦ ॥

ଶ୍ରୀ ଜଗନ୍ନାଥ ମନ୍ଦରେ,
ଗଜପତି ମହାରାଜାଙ୍କ ଥରେ ଲୋ
ଅଙ୍କ ଚଳିଥାଏ ପଞ୍ଜିକାରେ । ସଜନୀ ଲୋ ॥ ୧୦୧ ॥

ଭାଦ୍ର ଶୁକ୍ଳ ଚତୁର୍ଦ୍ଦଶୀ,
ଅନନ୍ତ ବ୍ରତ କେ କରେ ମନାସି ଲୋ
ଲୋକେ ପାଳିଥାନ୍ତି ହୋଇ ଖୁସି । ସଜନୀ ଲୋ ॥ ୧୦୨ ॥

ଶ୍ରବ ଶୁକ୍ଳ ପୂର୍ଣ୍ଣିମାରେ,
ଇନ୍ଦ୍ର ଦେବ ପୂଜା ମହୋତ୍ସବରେ ଲୋ
କରିଥାନ୍ତି ଜନେ ଆନନ୍ଦରେ । ସଜନୀ ଲୋ ॥ ୧୦୩ ॥

ଭାଦ୍ରବ ପୂର୍ଣ୍ଣିମା ଦିନ,
ବ୍ୟାସଙ୍କ ଭାଗବତ ଜନମ ଲୋ
ଯୋଗ ସଂସ୍କୃତେ କଲେ ରଚନ । ସଜନୀ ଲୋ ॥ ୧୦୪ ॥

ନବାକ୍ଷରୀ ଭାଗବତ,
ଜଗନ୍ନାଥ ଦାସଙ୍କର ପ୍ରଣୀତ ଲୋ
ସାରା ଉତ୍କଳେ ହୋଇଛି ଖ୍ୟାତ । ସଜନୀ ଲୋ ॥ ୧୦୫ ॥

ଏଥି ଅଛି ବ୍ରହ୍ମଜ୍ଞାନ
ଶୁକ ପରୀକ୍ଷିତେ କହିଲେ ଜାଣ ଲୋ
ଭାଗବତ ଏ ମହାପୁରାଣ । ସଜନୀ ଲୋ ॥ ୧୦୬ ॥

ଭାଦ୍ର ପୂର୍ଣ୍ଣିମା ଦିନରେ,
ଘର ତାରମ୍ବ କରନ୍ତି ନରେ ଲୋ
ପୂଜାପାଠ କରନ୍ତେ ଭକ୍ତିରେ । ସଜନୀ ଲୋ ॥ ୧୦୭ ॥

ଆଶ୍ୱିନ ଯେ କନ୍ୟା ମାସ,
ହୁଅଇ ଶିଶିର ଋତୁ ପ୍ରବେଶ ଲୋ
ଚିଲେ ହୃଦର ଦିଶଇ ଶସ୍ୟ । ସଜନୀ ଲୋ ॥ ୧୦୮ ॥

କନ୍ୟା ସଂକ୍ରାନ୍ତି ଦିନରେ,
ବିଶ୍ୱକର୍ମା ପୂଜା ବରଷେ ଥରେ ଲୋ
ହୋଇଥାଏ ଶିଳ୍ପ ଉଦ୍ୟୋଗରେ । ସଜନୀ ଲୋ ॥ ୧୦୯ ॥

ଅଶ୍ୱ ପଞ୍ଚମୀ ଆସଇ,
ସମସ୍ତର ଶ୍ରାଦ୍ଧ ପାଳି ପଡଇ ଲୋ
ପିତୃ ତରପଣେ ଦିନ ଯାଇ । ସଜନୀ ଲୋ ॥ ୧୧୦ ॥

କୃଷ୍ଣ ଷଷ୍ଠୀ ଆଶ୍ୱିନର,
ଗଜ ଷଷ୍ଠୀ ନାମ ଅଟେ ଏହାର ଲୋ
କେତେ କରନ୍ତି ବ୍ରତ ଆଦର । ସଜନୀ ଲୋ ।। ୧୧୧ ।।

କୃଷ୍ଣ ସପ୍ତମୀରେ ଦେଖ,
ଦୁର୍ଗାଙ୍କ ସହସ୍ର-କୁମ୍ଭାଭିଷେକ ଲୋ
ଦେବୀପୀଠେ କରନ୍ତି ପୂଜକ । ସଜନୀ ଲୋ ।। ୧୧୨ ।।

ମୂଳାଷ୍ଟମୀ ଦ୍ୱିତୀ ଓଷା,
ଏ ଦିନେ ପାଳନ କରନ୍ତି ଯୋଷା ଲୋ
ପୁତ୍ର ପାଇଁ କରିଥାନ୍ତି ଆଶା । ସଜନୀ ଲୋ ।। ୧୧୩ ।।

ପୁଅ ଜିଅନ୍ତିଆ ବ୍ରତ,
ବନ୍ଧ୍ୟାମାନଙ୍କର ବ୍ରତ ଉଚିତ ଲୋ
କରିଥାନ୍ତି କେତେ ଶ୍ରଦ୍ଧା ଚିତ୍ତ । ସଜନୀ ଲୋ ।। ୧୧୪ ।।

ଶ୍ରୀ ବିମଳା ଦେବୀଙ୍କର,
ଶାରଦୀୟ ବ୍ରତ ପଡେ ନିକର ଲୋ
ଶ୍ରୀ କ୍ଷେତ୍ରରେ ପୂଜା ତାଙ୍କର । ସଜନୀ ଲୋ ।। ୧୧୫ ।।

ଚଣ୍ଡୀ ଠାକୁରାଣୀଙ୍କର,
କଟକରେ ପୁନାବେଶ ସୁନ୍ଦର ଲୋ
ହୋଇଥାଏ ବଡ ଚମତ୍କାର । ସଜନୀ ଲୋ ।। ୧୧୬ ।।

ସମଲେଇ ଦେବୀଙ୍କର,
ସମ୍ବଲପୁରରେ ପୂଜା ଅପାର ଲୋ
ହୁଏ ମହୋତ୍ସବ ଆଡମ୍ବର । ସଜନୀ ଲୋ ।। ୧୧୭ ।।

ଶ୍ରୀ ଶାରଳା ଦେବୀଙ୍କର,
ଝଙ୍କଡେ ହୁଅଇ ପୂଜା ସମ୍ଭାର ଲୋ
ବିରଜାଙ୍କ ପୂଜା ଯାଜପୁର । ସଜନୀ ଲୋ ।। ୧୧୮ ।।

ଏ ମାସ ନାମ ଆଶ୍ୱିନ,
ଦେବୀମାନଙ୍କର ପୂଜା ବନ୍ଦନ ଲୋ
କରିଥାନ୍ତି ଦେବୀଭକ୍ତ ଜନ । ସଜନୀ ଲୋ ।। ୧୧୯ ।।

ଆଶ୍ୱିନର କୃଷ୍ଣପକ୍ଷ,
ପ୍ରତିପଦା ଠାରୁ ଅମାବାସ୍ୟାଯାକ ଲୋ
ପିତୃପକ୍ଷ ପାଳିଥାନ୍ତି ଲୋକ । ସଜନୀ ଲୋ ।। ୧୨୦ ।।

ଆଶ୍ୱିନ ଅମାବସ୍ୟା ଦିନ,
ମହାଳୟା ଶ୍ରାଦ୍ଧ କରନ୍ତି ଜନ ଲୋ
ଶେଷ ପିତୃପୁରୁଷ ତର୍ପଣ । ସଜନୀ ଲୋ ।। ୧୨୧ ।।

ନବ ପଞ୍ଚମୀ ତା' ପରେ,
ଶକ୍ତି ଉପାସନା ଶୁକ୍ଳ ପକ୍ଷରେ ଲୋ
ନିୟମରେ କରିଥାନ୍ତି ନରେ । ସଜନୀ ଲୋ ।। ୧୨୨ ।।

ଶୁକ୍ଳ ପଞ୍ଚମୀ ସପ୍ତମୀ,
ଅଷ୍ଟମୀ ନବମୀ ସଙ୍ଗେ ଦଶମୀ ଲୋ
ଭକ୍ତେ ପୂଜନ୍ତି ଦେବୀ ଭବାନୀ । ସଜନୀ ଲୋ ।। ୧୨୩ ।।

ମାତ ମହିଷ-ମର୍ଦ୍ଦିନୀ,
ଶରଣ-ରକ୍ଷଣୀ ବର-ଦାୟିନୀ ଲୋ
ତାହି ଭଜନ୍ତି ଦେବୀ ଶର୍ବାଣୀ । ସଜନୀ ଲୋ ।। ୧୨୪ ।।

ଜଗଦ୍ଧାତ୍ରୀ ଆଦିମାତ,
ଦୁର୍ଗତି-ନାଶିନୀ ଦୁର୍ଗା ବିଦିତ ଲୋ
ତାଙ୍କ ପାଦେ କର ପ୍ରଣିପାତ । ସଜନୀ ଲୋ ।। ୧୨୫ ।।

ଦଶମୀରେ ଦଶହରା,
ଦେବୀଙ୍କର ହୁଏ ପୂଜା ଯାତରା ଲୋ
ଏହା ଦରଶନେ ସୁଖ ଭରା । ସଜନୀ ଲୋ ।। ୧୨୬ ।।

ନବେଦ୍ୟ ଚନ୍ଦ୍ରହାନେ,
ଉତ୍ସବ କରନ୍ତ ଭକତମାନେ ଲୋ
ଜପ ଯଜ୍ଞ ପୂଜନ ବିଧାନେ । ସଜନୀ ଲୋ ॥ ୧୨୭ ॥

ଦୁର୍ଗା ଦେବୀଙ୍କ ମୂରତି,
ମଣ୍ଡପରେ ସ୍ଥାପି ଭକ୍ତେ ପୂଜନ୍ତ ଲୋ
ପର୍ବ ଆଡମ୍ବର ହୁଏ ଅତି । ସଜନୀ ଲୋ ॥ ୧୨୮ ॥

ବହୁ ନୃତ୍ୟ ଗୀତ ହୁଏ,
ବାଦ୍ୟ ବାଦେ ଧର ଚମକୁଥାଏ ଲୋ
ଦେବୀ ପୂଜା ସ୍ଥାନ ଶୋଭପାଏ । ସଜନୀ ଲୋ ॥ ୧୨୯ ॥

ଦୁର୍ଗାପୂଜା ଲୋକେ ସାରି,
ଭସାଣି ଯାତର କରନ୍ତ ଫେରି ଲୋ
ବାଦ୍ୟନାଦେ କମ୍ପଇ ନଗରୀ ସଜନୀ ଲୋ ॥ ୧୩୦ ॥

ଆଶ୍ୱିନ ପୂର୍ଣ୍ଣିମା ଦିନ,
କାର୍ତ୍ତିକେୟ ଜନ୍ମ ହୁଏ ପାଳନ ଲୋ
ମହାଲକ୍ଷ୍ମୀ ଦେବୀଙ୍କ ପୂଜନ । ସଜନୀ ଲୋ ॥ ୧୩୧ ॥

ଏ କୁମାର ପୂର୍ଣ୍ଣିମାରେ,
କୁମାରୀଏ ମିଳି ଏକ ସଙ୍ଗରେ ଲୋ
ଖେଳ ଖେଳିଥାନ୍ତ ମଉଜରେ । ସଜନୀ ଲୋ ॥ ୧୩୨ ॥

କନ୍ୟା ପରେ ତୁଳା ମାସ,
ଗର୍ଭଣା ସଂକ୍ରାନ୍ତ ହୁଏ ପ୍ରବେଶ ଲୋ
ଏହି ମାସ କାର୍ତ୍ତିକ ବିଶେଷ । ସଜନୀ ଲୋ ॥ ୧୩୩ ॥

କାର୍ତ୍ତିକ ସଂକ୍ରାନ୍ତ ଦିନ,
ବ୍ରତ ଆଚରନ୍ତ କେତେକ ଜନ ଲୋ
ଶାସ୍ତ୍ରମତେ କରନ୍ତ ପାଳନ । ସଜନୀ ଲୋ ॥ ୧୩୪ ॥

କୃଷ୍ଣ ଦ୍ୱାଦଶୀ ତୁଳାର,
ଗୋବତ୍ସା ଦ୍ୱାଦଶୀ ନାମ ଏହାର ଲୋ
ପୂଜା ହୁଏ ଗୋବତ୍ସଗାଈଙ୍କର । ସଜନୀ ଲୋ ॥ ୧୩୫ ॥

ତ୍ରୟୋଦଶୀର ତିଥିରେ,
ଧନ୍ୱନ୍ତରୀ ପୂଜା ହୁଏ ଦେଶରେ ଲୋ
ନୈବେଦ୍ୟଗଣେ ପୂଜନ୍ତ ଭକ୍ତିରେ । ସଜନୀ ଲୋ ॥ ୧୩୬ ॥

ତୁଳା କୃଷ୍ଣ ଚତୁର୍ଦ୍ଦଶୀ
ଶ୍ୟାମା ଦେବୀଙ୍କୁ ଯେ ପୂଜନ୍ତ ତୋଷି ଲୋ
ଭକ୍ତେ ଆରଧନା କରି ନିଶି । ସଜନୀ ଲୋ ॥ ୧୩୭ ॥

ଏ ଚତୁର୍ଦ୍ଦଶୀର ନାମ
ନର୍କ ଚତୁର୍ଦ୍ଦଶୀ ବୋଲନ୍ତ ଜନ ଲୋ
ଭୂତ ପ୍ରେତଙ୍କ ହୁଏ ପୂଜନ । ସଜନୀ ଲୋ ॥ ୧୩୮ ॥

ଶାଗ ଚଉଦ ପ୍ରକାର,
ଏ ଦିନରେ ଯେହୁ କଡର ଆହାର ଲୋ
ସର୍ବ ପାପ ଦୂର ହୁଏ ତାର । ସଜନୀ ଲୋ ॥ ୧୩୯ ॥

ପୟାଶ୍ରାଦ୍ଧ ଦୀପଦାନ,
ଅମାବାସ୍ୟା ଦିନେ କରନ୍ତ ଜନ ଲୋ
ଦୀପାବଳୀ ଉତ୍ସବ ପାଳନ । ସଜନୀ ଲୋ ॥ ୧୪୦ ॥

କାର୍ତ୍ତିକ ଏ ପୁଣ୍ୟ ମାସ,
କାର୍ତ୍ତିକ ମାହାତ୍ମ୍ୟ ଅଛି ପ୍ରକାଶ ଲୋ
ପୁଣ୍ୟ କରନ୍ତ ଲୋକେ ବିଶେଷ । ସଜନୀ ଲୋ ॥ ୧୪୧ ॥

ପ୍ରାତଃ ସ୍ନାନେ ଦାମୋଦର,
ନାମ ସ୍ମରଣରେ ପାତକ ଦୂର ଲୋ
ହରି ନାମେ ଭବ ସିନ୍ଧୁ ପାର । ସଜନୀ ଲୋ ॥ ୧୪୨ ॥

ଦୁଜା ଶୁକ୍ଳ ପ୍ରତିପଦରେ,
ଗିରି ଗୋବର୍ଦ୍ଧନ ପୂଜନ ବାରେ ଲୋ
ଅନ୍ନକୂଟ ଉତ୍ସବ ଏଥିରେ । ସଜନୀ ଲୋ ।। ୧୪୩ ।।

ଶୁକ୍ଳ ଦ୍ୱିତୀୟାର ଦିନ,
ଯମରାଜ ଚିତ୍ରଗୁପ୍ତ ପୂଜନ ଲୋ
କରିଥାନ୍ତି ତୋଷେ ସୁଧୀ ଜନ । ସଜନୀ ଲୋ ।। ୧୪୪ ।।

ଏ ଦିନେ ଭ୍ରାତାଙ୍କୁ ଆଣି,
ଶରଧାରେ ପୂଜିଥାନ୍ତି ଭଉଣୀ ଲୋ
ଭ୍ରାତୃ ଦ୍ୱିତୀୟା ନାମ ଏ ଜାଣି । ସଜନୀ ଲୋ ।। ୧୪୫ ।।

କାର୍ତ୍ତିକ ଶୁକ୍ଳ ଚତୁର୍ଥୀ
ନାଗ-ଚତୁର୍ଥୀ ଏ ଲୋକେ ପାଳନ୍ତି ଲୋ
ନାଗ ବ୍ରତେ ଦେଇଥାନ୍ତି ମତି । ସଜନୀ ଲୋ ।। ୧୪୬ ।।

କାର୍ତ୍ତିକ ଶୁକ୍ଳାଷ୍ଟମୀରେ,
ଗୋମାତା ପୂଜନ ହୁଏ ଭକ୍ତିରେ ଲୋ
ଗୋଷ୍ଠାଷ୍ଟମୀ ପାଳିଥାନ୍ତି ନରେ । ସଜନୀ ଲୋ ।। ୧୪୭ ।।

ଶୁକ୍ଳ ନବମୀର କାର୍ତ୍ତିକ,
ଅଁଳା ନବମୀ ଏ ବ୍ରତ ନାରୀଙ୍କ ଲୋ
ପାଳିଥାନ୍ତି ଆନନ୍ଦେ ଅଧିକ । ସଜନୀ ଲୋ ।। ୧୪୮ ।।

ଏହି ନବମୀ ଦିନ,
ଜଗଦ୍ଧାତ୍ରୀ ଦେବୀ ପୂଜା ବିଧାନ ଲୋ
ରାଧା ଦେବୀଙ୍କ ପାଦ ଦର୍ଶନ । ସଜନୀ ଲୋ ।। ୧୪୯ ।।

ଶ୍ରୀ କୃଷ୍ଣଙ୍କ ରାସକେଳି,
ଶୁକ୍ଳ ଦଶମୀରୁ ଆସଇ ଚଳି ଲୋ
ଲୋକେ ଦେଖିଥାନ୍ତି ହୋଇ ମେଳି । ସଜନୀ ଲୋ ।। ୧୫୦ ।।

ରାଧାକୃଷ୍ଣଙ୍କର ଲୀଳା,
ରାସ ମହୋତ୍ସବ ଉତ୍ତମ ପାଳ ଲୋ
ସଂକୀର୍ତ୍ତନ ସଂପ୍ରଦାୟ ମେଳା । ସଜନୀ ଲୋ। ॥ ୧୫୧ ॥

ଦଶମୀରୁ ପୌର୍ଣ୍ଣମାସୀ,
ରାସଲୀଳା କେତେ ଭରତବାସୀ ଲୋ
ଭକ୍ତେ କରିଥାନ୍ତି ହୋଇ ଖୁସି ॥ ସଜନୀ ଲୋ। ॥ ୧୫୨ ॥

ଶୁକ୍ଳ ଏକାଦଶୀ ଦିନ,
ପ୍ରଭୁ ଜଗନ୍ନାଥ-ଦେବୋତ୍ଥାପନ ଲୋ
ଶିରୀ-ମନ୍ଦିରେ ପର୍ବ ପାଳନ । । ସଜନୀ ଲୋ ॥ ୧୫୩ ॥

ଭୀଷ୍ମ ପଞ୍ଚକ ବ୍ରତ,
ଏକାଦଶୀ ଦିନେ ହୁଏ ପାଳିତ ଲୋ
ଜନେ ଆଚରନ୍ତି ବିଧି ମତ । ସଜନୀ ଲୋ ॥ ୧୫୪ ॥

ପୌର୍ଣ୍ଣମାସୀ ପରିଯନ୍ତ,
ପଞ୍ଚଦିନ ମତ୍ସ୍ୟମାଂସ ବର୍ଜିତ ଲୋ
ବକ-ପଞ୍ଚକ ଏ ଶାସ୍ତ୍ରମତ । ସଜନୀ ଲୋ ॥ ୧୫୫ ॥

ଶୁକଳ ଦ୍ୱାଦଶୀ ଦିନ,
ରତୁଭ-ଦ୍ୱାଦଶୀ ବ୍ରତ ଚଣନ ଲୋ
ତୁଳସୀଙ୍କ ବିବାହ ବିଧାନ । ସଜନୀ ଲୋ । ୧୫୬ ॥

ଶୁକ୍ଳ ଚତୁର୍ଦ୍ଦଶୀ ବାର,
ଲିଙ୍ଗରାଜ ପୀଠ ଧବଳେଶ୍ୱର ଲୋ
ବଡ଼ ଓଷା ଯାତ୍ରା ଶିବଙ୍କର । ସଜନୀ ଲୋ ॥ ୧୫୭ ॥

ରାସ ପୂର୍ଣ୍ଣିମା ଦିନରେ,
ରାସ ଲୀଳା ଶେଷ କରନ୍ତି ନରେ ଲୋ
ବାଲି ଯାତ୍ରା ଏହି ତିଥିରେ । ସଜନୀ ଲୋ ॥ ୧୫୮ ॥

ତୁଳା ପରେ ବିଛା ମାସ,
ମାର୍ଗଶିର ସଂକ୍ରାନ୍ତ ପ୍ରବେଶ ଲୋ
ଧାନ୍ୟ କ୍ଷେତ୍ରେ ପୂରିଥାଏ ଶସ୍ୟ । ସଜନୀ ଲୋ ॥ ୧୫୯ ॥

ବିଧା କୃଷ୍ଣ ପ୍ରତିପଦେ,
ଛାଡଖାଇ ପର୍ବ ହୁଏ ମଣ୍ଡପେ ଲୋ
ଭଜନେ କଟନ୍ତି ଲୋକ-ଆସରେ । ସଜନୀ ଲୋ ॥ ୧୬୦ ॥

ପ୍ରଥମାଷ୍ଟମୀ ତିଥିରେ,
ଜ୍ୟେଷ୍ଠ ପୁତ୍ର କନ୍ୟା ଆୟୁ ବୃଦ୍ଧିରେ ଲୋ
ବନ୍ଦାପନା କରନ୍ତି ଗୃହରେ । ସଜନୀ ଲୋ ॥ ୧୬୧ ॥

ତିଥିର କୃଷ୍ଣ ନବମୀ,
କାଞ୍ଜି ଅଁଳା ଓଷା ବଢ଼ତେ ରମି ଲୋ
ପାଳିଥାନ୍ତି ନାରୀ ବ୍ରତ ପ୍ରେମୀ । ସଜନୀ ଲୋ ॥ ୧୬୨ ॥

ଶୁକ୍ଳପକ୍ଷ ମାର୍ଗଶିର,
ଏ ମାସରେ ପୂଜା କମଳାଙ୍କର ଲୋ
କରିଥାନ୍ତି ପ୍ରତି ଗୁରୁବାର । ସଜନୀ ଲୋ ॥ ୧୬୩ ॥

ଗୁରୁବାରେ ସାଧ୍ୱୀମାନେ
ମହାଲକ୍ଷ୍ମୀ ପୂଜିଥାନ୍ତି ସୁମନେ ଲୋ
ଭକ୍ତି ଭରେ ଆପଣା ସଦନେ । ସଜନୀ ଲୋ ॥ ୧୬୪ ॥

ପୂର୍ଣ୍ଣକୁମ୍ଭ ସ୍ଥାପି ଦ୍ୱାରେ,
ଲକ୍ଷ୍ମୀବ୍ରତ ପୂଜା କରନ୍ତି ଘରେ ଲୋ
ହୁଳହୁଳି ଦେଇ ଆନନ୍ଦରେ । ସଜନୀ ଲୋ ॥ ୧୬୫ ॥

[illegible] ମାସର ମଧ୍ୟତ,
ଶୁକ୍ଳପକ୍ଷେ ଦଶମୀ ଗୁରୁବାର ଲୋ
ହେଲେ ସୁଦଶାବ୍ରତ ଆଚର । ସଜନୀ ଲୋ ॥ ୧୬୬ ॥

ଶ୍ରୀ ମହାଲକ୍ଷ୍ମୀଙ୍କ ବ୍ରତ,
କରିଥାନ୍ତି ବ୍ରତାଚାରୀ ସମସ୍ତ ଲୋ
ନାରୀମାନଙ୍କ ପରମ ହିତ । ସଜନୀ ଲୋ ॥ ୧୬୭ ॥

ଶୁକ୍ଳ ଶେଷ ଗୁରୁବାର,
ମାଣବସା ଗୁରୁବାର ବିସ୍ତର ଲୋ
ମହାଲକ୍ଷ୍ମୀଙ୍କ ପୂଜା ଆଚର । ସଜନୀ ଲୋ ॥ ୧୬୮ ॥

ବିଛା ଶୁକ୍ଳ ପଞ୍ଚମୀରେ,
କୁରଳ ପଞ୍ଚମୀ ଜାଣ ମନରେ ଲୋ
ଚକ୍ର ପୂଜିଥାନ୍ତି କୁମ୍ଭକାରେ । ସଜନୀ ଲୋ ॥ ୧୬୯ ॥

ଶୁକଳ ଷଷ୍ଠୀ ବିଛାର,
ପ୍ରାବରଣ ଷଷ୍ଠୀ ଚିତ୍ତେ ବିସ୍ତର ଲୋ
ହୋଇଥାଏ ଜଗନ୍ନାଥଙ୍କର । ସଜନୀ ଲୋ ॥ ୧୭୦ ॥

ଶୁକ୍ଳ ଦ୍ୱାଦଶୀ ବାସର,
ବ୍ୟଞ୍ଜନ ଦ୍ୱାଦଶୀ ଦେବତାଙ୍କର ଲୋ
ନାନା ବ୍ୟଞ୍ଜନେ ପୂଜା ଦେଖର । ସଜନୀ ଲୋ ॥ ୧୭୧ ।

ଶୁକ୍ଳ ତ୍ରୟୋଦଶୀ ତିଥି,
ଏ ଦିବସେ ହୁଏ ଗୀତା–ଜୟନ୍ତୀ ଲୋ
ସୁଧୀବର୍ଗ କେତେ ପାଳିଥାନ୍ତି । ସଜନୀ ଲୋ ॥ ୧୭୨ ॥

ଭକ୍ତି ଜ୍ଞାନ କର୍ମ ଯୋଗ,
କୃଷ୍ଣାର୍ଜ୍ଜୁନ-କଥା ଗୀତାର ମାର୍ଗ ଲୋ
ଧର୍ମ ଆଚରଣେ ଅପବର୍ଗ । ସଜନୀ ଲୋ ॥ ୧୭୩ ॥

ପବିତ୍ର ମହାଭାରତ,
ଭାରତୀୟ ଧର୍ମଶାସ୍ତ୍ର ବିଖ୍ୟାତ ଲୋ
ତହିଁ ମଧ୍ୟେ ଗୀତା ସାରତତ୍ତ୍ୱ । ସଜନୀ ଲୋ। ॥ ୧୭୪ ॥

ମାର୍ଗଶିର ପୌର୍ଣ୍ଣମାସୀ
ପଣ୍ଡୁ ଓଷା ବ୍ରତ ପଡଇ ଆସି ଲୋ
ଓଷା କରନ୍ତି ଯୋଷାଏ ମିଶି । ସଜନୀ ଲୋ। ॥ ୧୭୫ ॥

ଏ ମାସରେ ବିଲେ ଧାନ,
ପାଚି ଦିଶୁଥାଏ କି ଶୋଭନ ଲୋ
ଚଷା ଦେଖି ପୂର୍ଣ୍ଣ କରେ ମନ । ସଜନୀ ଲୋ ॥ ୧୭୬ ॥

ଏହା ପରେ ଧନୁ ମାସ
ପୌଷ କାଳ ଆସି ହୁଏ ପ୍ରବେଶ ଲୋ
ବାସହୀନ ଜନ ପାଏ କ୍ଳେଶ । ସଜନୀ ଲୋ ॥ ୧୭୭ ॥

ଧନୁ ସଂକ୍ରାନ୍ତିର ପାଶ,
ଶ୍ରୀ ଜଗନ୍ନାଥଙ୍କ ପହିଲି ଭୋଗ ଲୋ
ଧନୁମୁଆଁ ଯେ ଲାଗଇ ଆଗ । ସଜନୀ ଲୋ ॥ ୧୭୮ ॥

କୃଷ୍ଣ ଦ୍ୱିତୀୟାରେ ପର,
ବାଟ ଓଷା ବ୍ରତ ଦାଣ୍ଡ ପହଁର ଲୋ
ଯୋଷା କରିଥାନ୍ତି ଭକ୍ତିଭର । ସଜନୀ ଲୋ ॥ ୧୭୯ ॥

ପଉଷ ଅମାବାସ୍ୟାରେ,
ଲଗଇ ବକୁଳ ବେଶ ମଣ୍ଡପେ ଲେ
ସର୍ବ ଦେବଦେବୀଙ୍କ ଛାମୁରେ । ସଜନୀ ଲେ ॥ ୧୮୦ ॥

ପୌଷ ଶୁକ୍ଳ ଦଶମୀରେ,
ଶାମ୍ବ ଦଶମୀ ଏ ପାଳନ୍ତ ନରେ ଲେ
ସୂର୍ଯ୍ୟ ପୂଜନ୍ତ ଚନ୍ଦ୍ରଭାଗାରେ । ସଜନୀ ଲେ ॥ ୧୮୧ ॥

ସୂର୍ଯ୍ୟ ସର୍ବରୋଗ-ହାରୀ,
ଶାମ୍ବ ତାଙ୍କୁ ପୂଜି କଲେ ଗୁହାରି ଲେ
ମହାରୋଗରୁ ହୋଇଲେ ପାରି । ସଜନୀ ଲେ ॥ ୧୮୨ ॥

ପଉଷେ ଧନୁଯାତର,
କଂସ କଲ ରମକୃଷ୍ଣ ଡାକର ଲେ
ଗୋପୁଁ ଅଣାଇଲ ସେ ମଥୁର । ସଜନୀ ଲୋ ॥ ୧୮୩ ॥

ରଙ୍ଗସଭ କଲ କଂସ,
ରମକୃଷ୍ଣ ମାମୁଁ ଦେଖି ହରଷ ଲେ
ଦୁଷ୍ଟ ରକ୍ଷସେ ହୋଇଲେ ନାଶ । ସଜନୀ ଲୋ ॥ ୧୮୪ ॥

କୃଷ୍ଣଙ୍କୁ କଂସ ଦେଖିଲ,
ବଜରି କରି ତା' ପରଣ ଗଲ ଲେ
କୃଷ୍ଣ-ଅଙ୍ଗରେ ଯାଇ ମିଶିଲ । ସଜନୀ ଲୋ ॥ ୧୮୫ ॥

ବରଗଡ ଯେ ମଥୁର,
ମହୋତ୍ସବ ହୁଏ ଧନୁଯାତର ଲେ
ଯେଉଁ କୃଷ୍ଣ-ଲୀଳା ପରଂପର । ସଜନୀ ଲେ ॥ ୧୮୬ ॥

ଅସ୍ୱାଚାଳି ଗୋପ ଦେଶ,
ତୀର ନଦୀ ବହେ ଯମୁନା ବେଶ ଲୋ
ପୂର୍ଣ୍ଣିମାରେ କଂସ ଲୀଳା ଶେଷ । ସଜନୀ ଲୋ ॥ ୧୮୭ ॥

ପୁଷପୁନି ପର୍ବ ପାଳି
ଗ୍ରାମେ ଗ୍ରାମେ କେତେ ଛେର୍‌ଛେର ବୋଲି ଲୋ
ଧାନ ଦ୍ରବ୍ୟାଦି ମାଗନ୍ତ ବୁଲି । ସଜନୀ ଲୋ ॥ ୧୮୮ ॥

ପଉଷ ପୂର୍ଣ୍ଣିମା ଦିନ,
ଜଗନ୍ନାଥଙ୍କର ବେଶ ମଣ୍ଡନ ଲୋ
ଦେବାଭିଷେକ ନାମ ଏ ଘେନ । ସଜନୀ ଲୋ ॥ ୧୮୯ ॥

ପୁଷ୍ୟା ନକ୍ଷତ୍ର ବାସରେ,
ପୁଷ୍ୟାଭିଷେକ ଯେ ବର୍ଷକେ ଥରେ ଲୋ
ହୁଏ ଜଗନ୍ନାଥଙ୍କ ମନ୍ଦରେ । ସଜନୀ ଲୋ ॥ ୧୯୦ ॥

ପୌଷ ପରେ ମାଘ ମାସ,
ମକର ସଂକ୍ରାନ୍ତି ହୁଏ ପ୍ରବେଶ ଲୋ
ଚଳେ ଉତ୍ତରାୟଣେ ଦିନେଶ । ସଜନୀ ଲୋ ॥ ୧୯୧ ॥

ମକର ସଂକ୍ରାନ୍ତି ଦିନ,
ପ୍ରୟାଗ ଗଙ୍ଗାରେ ଯେ କରେ ସ୍ନାନ ଲୋ
ତାର ପାତକ ହୁଏ ଦହନ । ସଜନୀ ଲୋ ॥ ୧୯୨ ॥

ବଡ ଦେଉଳେ ପୁରୀତ,
ଲାଗଇ ମକର ଭେଟ ସମ୍ଭାର ଲୋ
ପ୍ରଭୁ ଜଗନ୍ନାଥଙ୍କ ପୂଜାର । ସଜନୀ ଲୋ ॥ ୧୯୩ ॥

ମାଘ ମାସେ ପ୍ରାତଃ ସ୍ନାନ,
ମାଧବ ନାମଟି ସ୍ମରିଲେ ମନ ଲୋ
ମହାପାପ ହୁଅଇ ମୋଚନ । ସଜନୀ ଲୋ ॥ ୧୯୪ ॥

ମାଘ ମାସ ଏକାଦଶୀ,
ଓଳାଶୁଣୀ ମେଳା ଜଟନ୍ତ ମିଶି ଲୋ
ଯାତ୍ରା ମହୋତ୍ସବେ ମନଖୁସି । ସଜନୀ ଲୋ ॥ ୧୯୫ ॥

ମାଘ କୃଷ୍ଣ ତ୍ରୟୋ ଦଶୀ,
ରଟନ୍ତୀ କାଳିକା ପୂଜା ମନାସି ଲୋ
କରିଥାଆନ୍ତି ପୂଜକେ ନିଶି । ସଜନୀ ଲୋ ॥ ୧୯୬ ॥

ତିଳା ଦେବୀ ଜନମ,
ମାଘ କୃଷ୍ଣ ଚତୁର୍ଦ୍ଦଶୀର ଦିନ ଲୋ
ରଟନ୍ତୀ ଚତୁର୍ଦ୍ଦଶୀ ଯା ନାମ । ସଜନୀ ଲୋ ॥ ୧୯୭ ॥

ତ୍ରିବେଣୀ ଅମାସ୍ୟା ଦିନ,
ତ୍ରିବେଣୀ ସଙ୍ଗମେ ଯେ କରେ ସ୍ନାନ ଲୋ
ତାର ପାପାଦି ହୁଏ ଖଣ୍ଡନ । ସଜନୀ ଲୋ ॥ ୧୯୮ ॥

ଶୁକ୍ଳ ଚତୁର୍ଥୀ ମାଘର,
ବରଦା ଚତୁର୍ଥୀ ନାମ ବିସ୍ତର ଲୋ
ପୂଜା ହୁଏ ଗୌରୀ ଦେବୀଙ୍କର । ସଜନୀ ଲୋ ॥ ୧୯୯ ॥

ଶୁକ୍ଳ ପଞ୍ଚମୀ ମାଘରେ,
ସରସ୍ୱତୀ ପୂଜା କରନ୍ତି ଘରେ ଲୋ
ବିଦ୍ୟାଦେବୀଙ୍କୁ ପୂଜନ୍ତି ନରେ । ସଜନୀ ଲୋ ॥ ୨୦୦ ॥

ସରସ୍ୱତୀ ଦେବମାତ,
ପଞ୍ଚମୀ ତିଥିରେ ହେଲେ ସମ୍ଭୂତ ଲୋ
ତାଙ୍କୁ ନମନ୍ତ ସର୍ବଜଗତ । ସଜନୀ ଲୋ ॥ ୨୦୧ ॥

ବସନ୍ତ ଶ୍ରୀ–ପଞ୍ଚମୀରେ,
ବାଳକ ବାଳିକା ବିଦ୍ୟାଳୟରେ ଲୋ
ସରସ୍ୱତୀ ପୂଜନ୍ତ ଭକ୍ତିରେ । ସଜନୀ ଲୋ ॥ ୨୦୨ ॥

ପଞ୍ଚମୀରେ ବିଦ୍ୟାରମ୍ଭ,
କଲେ ଶିଶୁଙ୍କର ହୁଅଇ ଶୁଭ ଲୋ
ବିଦ୍ୟା ଅଭ୍ୟାସରେ ସିଦ୍ଧି ଲାଭ । ସଜନୀ ଲୋ ॥ ୨୦୩ ॥

ବସନ୍ତ ଋତୁ ପ୍ରବେଶ,
ବସନ୍ତ ଉତ୍ସବ ନୀଳାଦ୍ରି ବାସେ ଲୋ
ସର୍ବେ ମଜ୍ଜନ୍ତ ପ୍ରେମ ଉଲ୍ଲାସେ । ସଜନୀ ଲୋ ॥ ୨୦୪ ॥

ମାଘ ଶୁକ୍ଳ ସପ୍ତମୀରେ,
ଚନ୍ଦ୍ରଭାଗା ସ୍ନାନ ପଡେ ସିନ୍ଧୁରେ ଲୋ
ମହାପୁଣ୍ୟ କୋଣାର୍କ ତୀର୍ଥରେ । ସଜନୀ ଲୋ ॥ ୨୦୫ ॥

ସୂର୍ଯ୍ୟ ଦେବଙ୍କର ପୂଜା,
ଉଦୟ-ବେଳାରେ ହୁଏ ସୁସଜ୍ଜା ଲୋ
ତାହା ଦେଖିବାକୁ ମନବଞ୍ଛା । ସଜନୀ ଲୋ ॥ ୨୦୬ ॥

ସୂର୍ଯ୍ୟ ଏକଚକ୍ର ରଥେ,
ଦୃଶ୍ୟ ହୋଇଥାନ୍ତି ନୟନ ପଥେ ଲୋ
ମହା ଦୁର୍ଲଭ ଦର୍ଶନ ତୀର୍ଥେ । ସଜନୀ ଲୋ ॥ ୨୦୭ ॥

କୋଣାର୍କ ଚନ୍ଦ୍ରଭାଗାରେ,
ସ୍ନାନ ଯେହୁ କରେ ପାତକ ହରେ ଲୋ
ମିଳେ ଦର୍ଶନ ଥିଲେ ଭାଗ୍ୟରେ । ସଜନୀ ଲୋ ॥ ୨୦୮ ॥

ଶୁକ୍ଳ ଅଷ୍ଟମୀ ମାଘର,
ଭୀଷ୍ମାଷ୍ଟମୀ ବୋଲି ଖ୍ୟାତ ଏ ବାର ଲୋ
ଶ୍ରାଦ୍ଧ ତର୍ପଣ କରନ୍ତି ନର । ସଜନୀ ଲୋ ॥ ୨୦୯ ॥

ଶୁକ୍ଳ ଏକାଦଶୀ ମାଘେ,
ବ୍ୟାସ ସରୋବର ମେଳା ସରଗେ ଲୋ
ଆଚରନ୍ତି ଜନେ ବଡଭାଗ୍ୟେ । ସଜନୀ ଲୋ ॥ ୨୧୦ ॥

ଶୁକ୍ଳ ତ୍ରୟୋଦଶୀ ତିଥି,
ନିତ୍ୟାନନ୍ଦ ପ୍ରଭୁଙ୍କର ଜୟନ୍ତୀ ଲୋ
ଏହା ବଇଷ୍ଣବେ ପାଳିଥାନ୍ତି । ସଜନୀ ଲୋ ॥ ୨୧୧ ॥

ପୂର୍ଣ୍ଣିମା ମାଘ ମାସର,
ଯୋରଣ୍ଡା ମେଳା ତ ବସେ ଆସର ଲୋ
ଅଗ୍ନି ଉତ୍ସବ ଏହି ବାସର । ସଜନୀ ଲୋ ॥ ୨୧୨ ॥

ମାଘ ଅନ୍ତେ ଫାଲଗୁନ,
କୁମ୍ଭ ମାସ ବୋଲି ଏହା ଗଣନ ଲୋ
ଋତୁ ବସନ୍ତେ ଉଲ୍ଲାସ ମନ । ସଜନୀ ଲୋ ॥ ୨୧୩ ॥

ଫାଲ୍‌ଗୁନ କୃଷ୍ଣପକ୍ଷରେ,
ଚତୁର୍ଦ୍ଦଶୀ ତିଥି ଶୁଭ ବାସରେ ଲୋ
ଶିବରାତ୍ରି ପାଳିଥାନ୍ତି ନରେ । ସଜନୀ ଲୋ ॥ ୨୧୪ ॥

ଶିବରାତ୍ରି ଉପବାସ,
କଲେ ଲୋକଙ୍କର ଖଣ୍ଡଇ କ୍ଲେଶ ଲୋ
ବାଞ୍ଛା ପୂର୍ଣ୍ଣ କରନ୍ତ ମହେଶ । ସଜନୀ ଲୋ ॥ ୨୧୫ ॥

ବଦରିକା ରାମେଶ୍ୱର,
କାଶୀ ଉଜ୍ଜୟିନୀ ଭୁବନେଶ୍ୱର ଲୋ
ପୁଣ୍ୟ ତୀର୍ଥେ ଉତ୍ସବ ଅପାର । ସଜନୀ ଲୋ ॥ ୨୧୬ ॥

ଭକ୍ତି ଭରେ ନରନାରୀ,
ଶିବରାତ୍ରି ବ୍ରତ ଥାନ୍ତି ଆଚରି ଲୋ
ଜାଗରଣେ ଯାପନ୍ତ ଶର୍ବରୀ । ସଜନୀ ଲୋ ॥ ୨୧୭ ॥

ବାଞ୍ଛା ଫଳ-ଦାତା ଶିବ,
ତାଙ୍କ ପରସାଦେ ମିଳେ ବିଭବ ଲୋ
ବର ଦିଅନ୍ତ ପାର୍ବତୀ-ଧବ । ସଜନୀ ଲୋ ॥ ୨୧୮ ॥

ଶିବ ଚତୁର୍ଦ୍ଦଶୀ ବ୍ରତ,
ପ୍ରତି ମାସେ କରିଥାନ୍ତି ଭକତ ଲୋ
ହର-ପ୍ରସାଦେ ଖଣ୍ଡେ ଦୁରିତ । ସଜନୀ ଲୋ ॥ ୨୧୯ ॥

ଦଶମୀ ଫାଲ୍‌ଗୁନ ଶୁକ୍ଳ,
ଫଗୁ ଦଶମୀ ଏ ଫଗୁର ଖେଳ ଲୋ
ସର୍ବ ଦେବ ମନ୍ଦିରେ ଚହଳ । ସଜନୀ ଲୋ ॥ ୨୨୦ ॥

ଫାଲ୍‌ଗୁନେ ଦୋଳଗୋବିନ୍ଦ,
ଫଗୁ ଖେଳିଥାନ୍ତି ଭକତ ବୃନ୍ଦ ଲୋ
ଫଗୁ ଉଡ଼ିରେ ମନ ଆନନ୍ଦ । ସଜନୀ ଲୋ ॥ ୨୨୧ ॥

ଶୁକଳ ଦ୍ୱାଦଶୀ ଦିନ,
ଗୋବିନ୍ଦ-ଦ୍ୱାଦଶୀ ଜାହ୍ନବୀ– ସ୍ନାନ ଲୋ
ଲୋକେ ଆଚରନ୍ତ ତୋଷ ମନ । ସଜନୀ ଲୋ ।। ୧୧୨ ।

ଫାଲଗୁନ ଚତୁର୍ଦ୍ଦଶୀ,
ଶ୍ରୀ ବରଦ ଦୋଳ କରନ୍ତି ମିଶି ଲୋ
ଭକ୍ତେ ମହାପ୍ରଭୁ ପ୍ରେମେ ରସି । ସଜନୀ ଲୋ ।। ୧୧୩ ।।

ଫାଲ୍‌ଗୁନ ପୂର୍ଣ୍ଣିମାରେ,
ମଣ୍ଡିଥାନ୍ତି ଲୋକେ ଫଗୁ ଖେଳରେ ଲୋ
ପ୍ରତି ଗ୍ରାମେ ଉତ୍ସାହ ସମ୍ଭାରେ । ସଜନୀ ଲୋ ।। ୧୧୪ ।।

ପୁରୀ କାଶୀ ଅଯୋଧ୍ୟାରେ,
ବୃନ୍ଦାବନ ଗୋପ ମଥୁରାପୁରେ ଲୋ
କୁରୁକ୍ଷେତ୍ର ତୀର୍ଥ ଦ୍ୱାରକାରେ । ସଜନୀ ଲୋ ।। ୧୧୫ ।।

ଶ୍ରୀ ଜଗନ୍ନାଥ ମନ୍ଦିରେ,
ଫଗୁ ଖେଳ ହୁଏ ଶ୍ରୀକ୍ଷେତ୍ରବରେ ଲୋ
ମହା ଉତ୍ସବ ଏ ଦିବସରେ । ସଜନୀ ଲୋ ।। ୧୧୬ ।।

ଆକାଶେ କି ରଙ୍ଗ ବୋଳା,
ଦେବତାଏ ଫଗୁ ଖେଳନ୍ତି ଭଲ ଲୋ
ଦେଖ ସଂସାରେ ପ୍ରଭୁଙ୍କ ଲୀଳା । ସଜନୀ ଲୋ ।। ୧୧୭ ।।

ଫାଲଗୁନ ପୂର୍ଣ୍ଣିମା ଦିନ,
ନବଦ୍ୱୀପ ନଦୀୟାରେ ଚୈତନ୍ୟ ଲୋ
ମହାପ୍ରଭୁଙ୍କ ଶୁଭ ଜନମ । ସଜନୀ ଲୋ ।। ୧୧୮ ।।

ହରେକୃଷ୍ଣ ହରେରାମ,
ମହାମନ୍ତ୍ର ବତିଶାକ୍ଷର ନାମ ଲୋ
କୀର୍ତ୍ତନରେ ମିଳେ ପୁଣ୍ୟ ଧାମ । ସଜନୀ ଲୋ ॥ ୨୨୯ ॥

କଳିକାଳ ପାପ ଘର,
ରାମକୃଷ୍ଣ ନାମେ ହୁଅଇ ଦୂର ଲୋ
ଜୟ ଚୈତନ୍ୟ ନିତାଇ ଗୌର । ସଜନୀ ଲୋ ॥ ୨୩୦ ॥

ଦୋଳଯାତ୍ରା ପରେ ହୋଲି,
ଖେଳିଥାନ୍ତି ଲୋକେ ଅବିର ବୋଳି ଲୋ
ଫଗୁରଙ୍ଗ କେତେ ଗୋଳାଗୋଳି । ସଜନୀ ଲୋ ॥ ୨୩୧ ॥

ବାଦ୍ୟନାଦେ ଗ୍ରାମପୁର,
ହୋଲି ଖେଳ ହୁବି ପଡେ ନିକର ଲୋ
ସ୍ନେହେ ବନ୍ଧା ସର୍ବ ନାରୀନର । ସଜନୀ ଲୋ ॥ ୨୩୨ ॥

କୁମ୍ଭ ପରେ ମୀନ ମାସ,
ସଂକରନ୍ତି ଆସି ହୁଏ ପ୍ରବେଶ ଲୋ।
ଚୈତ୍ରେ ମଲ୍ଲୀ ଫୁଟି କରେ ବାସ । ସଜନୀ ଲୋ ॥ ୨୩୩ ॥

କୃଷ୍ଣ ପଞ୍ଚମୀରେ ଏଥି,
ପଞ୍ଚଦୋଳ କେତେ ଭକ୍ତ ପାଳନ୍ତି ଲୋ।
ଆନନ୍ଦରେ ଉତ୍ସବ ମାନନ୍ତି । ସଜନୀ ଲୋ ॥ ୨୩୪ ॥

ଚୈତ୍ର କୃଷ୍ଣ ତ୍ରୟୋଦଶୀ,
ଏ ଦିନେ ବାରୁଣୀ ପଡଇ ଆସି ଲୋ।
ଗଙ୍ଗା ସ୍ନାନେ ଯାନ୍ତି ଲୋକେ ବେଶୀ । ସଜନୀ ଲୋ ॥ ୨୩୫ ॥

ଚୈତ୍ର କୃଷ୍ଣ ଶେଷବାରେ,
ମଧୁ ଅମାବାସ୍ୟା ଏ ଗଣନାରେ ଲୋ
ସୂର୍ଯ୍ୟ ମହତୀ ସ୍ନାନ ସାଗରେ । ସଜନୀ ଲୋ ।। ୨୩୬ ।।

ଚୈତ୍ର ଶୁକ୍ଳ ଅଷ୍ଟମୀରେ,
ଅଶୋ କାଷ୍ଟମୀ ଏ ଭୁବନେଶ୍ବରେ ଲୋ
ପାଳିଥାଆନ୍ତି ଜନେ ଭକ୍ତିରେ । ସଜନୀ ଲୋ ।। ୨୩୭ ।।

ଲିଙ୍ଗରାଜ ଦେବଙ୍କର,
ରଥଯାତ୍ରା ପର୍ବ କେତେ ସୁନ୍ଦର ଲୋ
ଦରଶନେ ଅଘ ହୁଏ ଦୂର । ସଜନୀ ଲୋ ।। ୨୩୮ ।।

ଚୈତ୍ର ଶୁକ୍ଳ ନବମୀରେ,
ଶ୍ରୀରାମ ନବମୀ ଅଯୋଧ୍ୟାପୁରେ ଲୋ
ବଡ ପରବ ପାଳନ୍ତି ନରେ । ସଜନୀ ଲୋ ।। ୨୩୯ ।।

ଏ ରାମ ନବମୀ ଦିନ,
ରାମ-ଜନ୍ମୋତ୍ସବ ପାଳନ୍ତି ଜନ ଲୋ
ଭକ୍ତେ କରନ୍ତି ପୂଜାପାଠନ । ସଜନୀ ଲୋ ।। ୨୪୦ ।।

ଶ୍ରୀରାମ ଚରିତ ବାଣୀ,
ସାତକାଣ୍ଡ ରାମାୟଣ ବଖାଣି ଲୋ
ଲେଖିଅଛନ୍ତି ବାଲ୍ମୀକି ମୁନି । ସଜନୀ ଲୋ ।। ୨୪୧ ।।

ଶ୍ରଦ୍ଧାରେ ଘରେ ଘରେ,
ରାମାୟଣ ଗାନ କରନ୍ତି ନରେ ଲୋ
ରାମ ନାମ ପାପମାନ ହରେ । ସଜନୀ ଲୋ ।। ୨୪୨ ।।

ବାସନ୍ତିକ ଦଶହରା,
ଚଇତ୍ର ଶୁକଳ ଦଶମୀ ପରା ଲୋ
ପାଳିଥାନ୍ତି କେତେ ହର୍ଷ ଭରା ।ସଜନୀ ଲୋ। ॥ ୨୪୩ ॥

ଚୈତ୍ର ଶୁକ୍ଳ ତ୍ରୟୋଦଶୀ,
ଅନଙ୍ଗ ଜନମ ପଡ଼ଇ ଆସି ଲୋ
କାମଦେବଙ୍କୁ ପୂଜନ୍ତି ଋଷି । ସଜନୀ ଲୋ ॥ ୨୪୪ ॥

ଚଇତ୍ର ପୂର୍ଣ୍ଣିମା ଦିନ,
ନାବ ପୂଜା ଚୈତ୍ର-ପର୍ବ ପାଳନ ଲୋ
ସଙ୍ଗେ ହିଙ୍ଗୁଳା ଦେବୀ ପୂଜନ । ସଜନୀ ଲୋ ॥ ୨୪୫ ॥

ଏକାଦଶୀ ମହାବ୍ରତ,
ପ୍ରତିମାସେ ପଡେ ଦୁଇଥର ତ ଲୋ
ଏହା ପାଳନ୍ତି କେତେ ଭକତ । ସଜନୀ ଲୋ ॥ ୨୪୬ ॥

ସ୍ୱେଚ୍ଛାରେ କୌଣସି ଦିନ,
ସତ୍ୟନାରାୟଣ ବ୍ରତ ପୂଜନ ଲୋ
କରିଥାଆନ୍ତି ଭକତ ଜନ । ସଜନୀ ଲୋ ॥ ୨୪୭ ॥

ଶ୍ରୀ ତ୍ରିନାଥ ଦେବଙ୍କର,
ମେଳା ପୂଜା ହୁଏ ଆଦିତ୍ୟବାର ଲୋ।
ପାଳିଥାନ୍ତି କେତେ ଭକ୍ତ ନର । ସଜନୀ ଲୋ। ॥ ୨୪୮ ॥

ରବି ନାରାୟଣ ବ୍ରତ,
କରିଥାନ୍ତି ଜନେ ଏକଚିତ୍ତ ଲୋ
ସୂର୍ଯ୍ୟଦେବଙ୍କ ପୂଜା ବିହିତ । ସଜନୀ ଲୋ। ॥ ୨୪୯ ॥

ସୂର୍ଯ୍ୟ ପୂଜା ରବିବାରେ,
ଶିବ-ଆରାଧନା ସୋମ ବାସରେ ଲୋ
ମଙ୍ଗଳାଙ୍କ ପୂଜା ମଙ୍ଗଳରେ । ସଜନୀ ଲୋ ॥ ୨୫୦ ॥

ବୁଧରେ ବୁଧେଇ ଓଷା,
ଗୁରୁ ଲକ୍ଷ୍ମୀବ୍ରତ କରନ୍ତି ଯୋଷା ଲୋ
ଶୁକ୍ରେ ସନ୍ତୋଷୀ ମାତାଙ୍କୁ ତୋଷା । ସଜନୀ ଲୋ ॥ ୨୫୧ ॥

ଶନିମେଳା ଶନିବାରେ,
ଆଚରନ୍ତି କେତେ ଭକତ ନରେ ଲୋ
ପୂଜା ବିଧି ଯଥା ସମୟରେ । ସଜନୀ ଲୋ ॥ ୨୫୨ ॥

ଏହିପରି ବାରମାସେ,
ଅନେକ ପରବ ପର୍ବାଣି ଆସେ ଲୋ
ନରନାରୀ ପାଳନ୍ତି ଉଲ୍ଲାସେ । ସଜନୀ ଲୋ ॥ ୨୫୩ ॥

ଉପବାସ ଯଜ୍ଞବ୍ରତ,
ବିଶ୍ୱାସରେ କଲେ ଫଳ ପ୍ରାପତ ଲୋ
ଭବଗ୍ରାହୀ ପ୍ରଭୁ ଜଗନ୍ନାଥ । ସଜନୀ ଲୋ ॥ ୨୫୪ ॥

ବାରମାସୀ ପର୍ବ ଗୀତ,
ପୂର୍ଣ୍ଣ ହେଲା ଏଥି ପ୍ରାଣ ସଂଘାତ ଲୋ
ପଢ଼ ଶୁଣି ହୁଅ ଆନନ୍ଦିତ । ସଜନୀ ଲୋ ॥ ୨୫୫ ॥

ଭ୍ରମ ଥିଲେ ରଚନାରେ,
ମାର୍ଜନା କରିବେ ଭଣାଏଁ ବାରେ ହେ
ନିବେଦନ ସୁଧୀଜନ ଠାରେ । ସୁଜନେ ହେ । ॥ ୨୫୬ ॥

ଇଂରଜୀ ସନ ମସିହା,
ଉଣେଇଶ ତେୟାଶୀ ମଜରେ ଏହା ହେ
ପୂର୍ଣ୍ଣ ହେଲା ସାହା ଚଉଦାହା । ସୁଜନେ ହେ ॥ ୧୫୭ ॥

ଶ୍ରୀ ଜଗନ୍ନାଥ କୃପାରେ,
ବିରଚିତ ସିନାପାଲି ଗ୍ରାମରେ ହେ
ମନୋହର-କବିତା-ବାସରେ । ସୁଜନେ ହେ ॥ ୧୫୮ ॥

ଆହେ ପ୍ରଭୁ ନାରାୟଣ,
ସୁମତି ସଙ୍ଗତେ ଯାଉ ମୋ ଦିନ ହେ
ହରେକୃଷ୍ଣ ନାମ କରି ଗାନ । ଶ୍ରୀହରି ହେ ॥ ୧୫୯ ॥

ଜଗନ୍ନାଥ ଯୋଗେଶ୍ୱର,
କୃପା-କଟାକ୍ଷରେ ମୋ ଦୁଃଖ ହର ହେ
ଶୁଭେ ରଖିଥାଅ ଏ ସଂସାର । ଶ୍ରୀହରି ହେ ॥ ୧୬୦ ॥

ନାରାୟଣ ଉପକାର,
ଖଣ୍ଡ ଦୁଃଖ-ରାଶି କମଳାବର ହେ
ତବ ଚରଣେ କର କୋୟର । ଶ୍ରୀହରି ହେ ॥ ୧୬୧ ॥

ଇତି ଶ୍ରୀ ବାରମାସୀ ପର୍ବପର୍ବାଣୀ ସଂପୂର୍ଣ୍ଣ ।

—ଶ୍ରୀ ଶୁଭମସ୍ତୁ—





କବି ଶ୍ରୀ ନାରାୟଣ ଭରସା ମେହେର

( ଜନ୍ମ ତା ୩୧ । ୧୦ । ୧୯୬୧ )

# କବି ଶ୍ରୀ ନାରାୟଣ ଭରସା ମେହେରଙ୍କ

## ରଚନାବଳୀ: —

### ପ୍ରକାଶିତ:-

୧- ସତ୍ୟନାରାୟଣ ବ୍ରତ ପୂଜା
୨- ପଲ୍ଲୀପତନ କାରିକା
୩- ବନ୍ଧ୍ୟାଚିକିତ୍ସା ଫଳ
୪- ବୈଷ୍ଣବ ସ୍ତବ
୫- ହରିନାରାୟଣ ସ୍ତବ
୬- ସତ୍ୟସାବିତ୍ରୀ ବ୍ରତ ପୁରାଣ
୭- ପଲ୍ଲୀଜାଗରଣ ଗୀତ
୮- ବାରମାସୀ ପର୍ବପର୍ବାଣୀ

### ଅପ୍ରକାଶିତ:-

୧- ମହିମାସାଗର
୨- ନାରାୟଣ ପଦ୍ୟାବଳୀ
୩- ନାରାୟଣ ଭଜନାବଳୀ
୪- ମହାଲକ୍ଷ୍ମୀ ସ୍ତବ
୫- ମହାମାୟା ସ୍ତବ
୬- ଦଣ୍ଡଅଟୋର ସ୍ତବ
୭- ମହାଦେବ ସ୍ତବ
୮- ଶିଶୁ ଶିକ୍ଷାଗୀତ
୯- ଷୋଳ ସୋମବାର ବ୍ରତ ପୂଜା
୧୦- ସୋମନାଥ ବ୍ରତ ପୂଜା
୧୧- ଡାଲଖାଇ ମଲ୍ଲୁଡ଼ ଗୀତ
୧୨- ଏ ଯୁଗର ରୀତିନୀତି
୧୩- ଶ୍ରୀ ଜଗନ୍ନାଥଙ୍କ ବେଶ ଗୀତ
୧୪- ରାଜ୍ୟଶାସନର ରୀତିନୀତି
୧୫- ସାର ଅସାର ଗୀତ
୧୬- ଗଡଗୋଚର
୧୭- ଗୁରୁ ମହିମା
୧୮- ନାରୀଚରିତ ଲକ୍ଷଣ
୧୯- ଜଗନ୍ନାଥ ପୁରୀ ଦୃଶ୍ୟ
୨୦- ସାକ୍ଷରତା-ଜାଗରଣ
୨୧- ଚାଣକ୍ୟନୀତି ସାର
୨୨ ବିଷ୍ଣୁ ପୁରାଣ (ପଦ୍ୟାନୁବାଦ)

